ଭୂଷଣ ସମ୍ଭୂ ଗର୍ବ ଖଣ୍ଡନ

# ଲେଖା-ଚନ୍ଦ୍ରିକା ।

—◦○✲○◦—

ଶ୍ରୀମଦନମୋହନ ପଟ୍ଟନାୟକଙ୍କ ସଙ୍କଳିତ ।

---

{ ନମି ସରସ୍ୱତୀ ପଦେ ଯୋଡ଼ି ବେନିକର
ଲେଖା ଧରିବାକୁ ଗୃହେ ହୁଅ ତତପର }

---

ଶ୍ରୀ ଗୋବିନ୍ଦରଥଙ୍କ ଦ୍ୱାରା

ପ୍ରକାଶିତ ।

---

CUTTACK,
Printed by the Cuttack Printing Company,
1888.

ମୂଲ୍ୟ ଠ ୦ ✓ ମାତ୍ର ।



ନ ୧ ମ୍ବର ।

ବରଷ ସାଧବ ଅପ୍ୟ ଯେତେ ତିବନରେ
ସପ୍ତଦବସେ ତେତେ ଟଙ୍କା ବ୍ୟୟକରେ
ନବଦନରେ ତେତେ ଦାନ  କରଇ ଯଥା ବିଧାନ
ଏହାପର  ଏକଶତ  ଷଡ଼ବଂଶଦନରେ
ଦୁଇଶତଟଙ୍କା ରଖିଥିଲା ତା ବସ୍ତୁରେ
କହ ହେ ସୁବୋଧ ଶିଶୁ ମାସି ଅପ୍ୟ ତାରେ । ୧ ।

ଜ ୧ ଣ ସାଧବ ଦ ୩ ନରେ ଯେତେ ଅପ୍ୟ କରେ ଦ ୭ ନରେ ତେତେ ବ୍ୟୟ କରେ । ଦ ୯ ନରେ ତେତେ ଟଙ୍କା ଦାନ କରେ । ଏହାପର ଦ ୧୨୬ ନରେ ଟ ୨୦୦ ଙ୍କା ଜମା କରଥିଲା ତାହାର ମାସିକ ଅପ୍ୟ କେତେ ।

∴ ଦ ୩ ନର ଅପ୍ୟ ଟ ୧୧ ଙ୍କା (କଳ୍ପନା) ∴ ଦ ୧୨୬ ନରେ ∴ ୧୨୬ + ୩ = ୪୨; ∴ ୧୨୬ ÷ ୭ = ୧୮ ∴ ୧୨୬ ÷ ୯ = ୧୪; ∴ ୪୨ − (୧୮ + ୧୪) = ୧୦ ∴ ୧୦ : ୨୦୦ :: ୧ : ଅ;

∴ (୨୦୦ × ୧) / (୧୦ × ଅ) = ୨୦ ଦ ୩ ନର ଅପ୍ୟ ଟ ୨୦୧ ଙ୍କା ∴ ଏ-କମାସକୁ ଟ ୨୦୦୧ ଙ୍କା ।

ନ ୨ ମ୍ବର ।

ଖମ୍ବ ହୁଛ ନବବସ୍ତୁ ତାହଲେ ବବର
ତହୁଁ ସପ୍ତବଂଶବସ୍ତୁ ହୁଏ ଅହବର
ଖମ୍ବାଗ୍ର-ମୟୂରତରେ  ପଳାଏ ଗର୍ତ୍ତମୁଖରେ
ମୟୂର ତାହାକୁ ଅକମିଲ୍କ ଶୀଘ୍ରତର

ସମ୍ପାତ ସ୍ଥାନ୍ ତୁରନ୍ତ ଗତ ସମତୁଲ
କେତେହାତ ଗତିଥିଲା ସର୍ପଙ୍କୁ ଅନ୍ତର ।

ହା ୯ ତ ଉଚ୍ଚ ସ୍ତମ୍ଭ ଉପରେ ଗୋଟିଏ ମୟୂର ବସିଥିଲା ସେହି ସ୍ତମ୍ଭ ମୂଳ ଗର୍ତ୍ତଠାରୁ ହା ୨୭ ତ ଦୂରେ ଗୋଟିଏ ସର୍ପ କ୍ରୀଡ଼ା କରୁଥିଲା । ମୟୂର ସର୍ପକୁ ଦେଖି ତାହା ଉପରେ ମାଡ଼ ପଡ଼ଲା ଏବଂ ସର୍ପ ମୟୂର ଦେଖି ସ୍ତମ୍ଭମୂଳଗର୍ତ୍ତାଭିମୁଖେ ପଳାୟନ କଲା । ଯେଉଁସ୍ଥାନରେ ମୟୂର ଓ ସର୍ପର ସମ୍ପାତ ହେଲା ସେ ସ୍ଥାନଠାରୁ ସ୍ତମ୍ଭାଗ୍ର ଏବଂ ସର୍ପର ପ୍ରଥମଦୃଷ୍ଟିସ୍ଥାନ ସମାନ ଅଟେ, ତାହା ହେଲେ ଆଉ କେତେହାତ ଯାଇଥିଲେ ସର୍ପ ଗର୍ତ୍ତରେ ପଶିଥାନ୍ତା ।

ନିୟମ । ସମକୋଣୀ ତ୍ରିଭୁଜର କର୍ଣ୍ଣ ଓ ଏକବାହୁର ଯୋଗଫଳ ଜଣାଥିଲେ, ଅପର ବାହୁର ବର୍ଗକୁ ଏହି ଯୋଗଫଳଦ୍ୱାରା ଭାଗ କର । ପରେ ଏହି ଭାଗଫଳକୁ ଉପରୋକ୍ତ ଯୋଗଫଳରେ ଯୋଗକର ଅର୍ଦ୍ଧେ କଲେ କର୍ଣ୍ଣ; ଏବଂ ବିଯୁକ୍ତ କରି ଅର୍ଦ୍ଧେ କଲେ ଅନ୍ୟବାହୁର ଫଳ ଆସିବ ।

∴ ୯² ÷ ୨୭ = ୮୧ ÷ ୨୭ = ୩ ∴ (୨୭ + ୩) ÷ ୨ = ୧୫ ହାତ ମୟୂରର ଗତ ∴ (୨୭ − ୩) ÷ ୨ = ୧୨ ହାତ ଯାଇଥିଲେ ସର୍ପ ଗର୍ତ୍ତରେ ପଶିଥାନ୍ତା ।

ନ ୩ ମ୍ବର

ଗଗନରେ ସୂର୍ଯ୍ୟ ଯହୁଁ ହୋଇଲେ ଉଦିତ,
ସରସୀରେ ହେଲାଉତ୍ତୁଁ ପଦ୍ମ ପ୍ରସ୍ଫୁଟିତ -
ପୋଖରୀମଧ୍ୟ-ନଳିନ ଜଳଠାରୁ ବ୍ୟବଧାନ
ଦ୍ୱାଦଶ ଅଙ୍ଗୁଳ ଥିଲା ଉର୍ଦ୍ଧ୍ୱକୁ ଉନ୍ନତ
ବାୟୁଯୋଗେ ଦୁଇହସ୍ତେ ଜଳରେ ମଜ୍ଜିତ
କହ ପ୍ରିୟଶିଷ୍ୟ-ବୃନ୍ଦ ଜଳ ପରିମିତ

ପୁଷ୍କରିଣୀମଧ୍ୟରେ ଏକ ପଦ୍ମଫୁଲ ପାଣିଠାରୁ ହା° । ୧୨ ଅଙ୍ଗୁଳ

ଉକ୍ତ ଅଗ୍ର ପରେ ବାୟୁଯୋଗରେ ହା ୨ ଛ ଦୂରେ ଜଳମଗ୍ନ ହେଲା ତେବେ ସେ ପୁଷ୍କରିଣୀରେ କେତେ ହସ୍ତ ଜଳ ଅଛି । ୩ ।

ନିୟମ । ସମକୋଣୀ ତ୍ରିଭୁଜର ଭୂମି, ଏବଂ କର୍ଣ୍ଣ ଓ କୋଟିର ବିୟୁକ୍ତ ଫଳ ଜଣା ଥିଲେ ଏହି ଦୁହିଁଙ୍କର ବର୍ଗ ଫଳର ଯୋଗଫଳକୁ ଉପରୋକ୍ତ କର୍ଣ୍ଣ ଓ କୋଟିର ବିୟୁକ୍ତ ଫଳର ଦୁଇଗୁଣରେ ଭାଗ କଲେ କର୍ଣ୍ଣ; ଏବଂ ସେହି ଦୁଇବର୍ଗଫଳର ବିୟୁକ୍ତ ଫଳକୁ ଭାଗ କଲେ କୋଟି ଆସିବ ।

∴ ହା ୨ ଛ = ୪୮ ଅଙ୍ଗୁଳ

∴ ୪୮² + ୧୨² = ୨୩୦୪ + ୧୪୪ = ୨୪୪୮

∴ ୨୪୪୮ ÷ (୧୨ × ୨) = ୧୦୨ କର୍ଣ୍ଣ ∴ ୪୮² − ୧୨² = ୨୩୦୪ − ୧୪୪ = ୨୧୬୦ ∴ ୨୧୬୦ ÷ (୧୨ × ୨) = ୯୦ କୋଟି ∴ ୯୦ ଅଙ୍ଗୁଳ = ହା ୩।୧୮ ଅଙ୍ଗୁଳ ପାଣି ।

ନ ୪ ମ୍ବର

ଘନବନେ ଏକଦଳ ଭୃଙ୍ଗ ଥିଲେ ରହି
ଅର୍ଦ୍ଧାଂଶ ଉଡ଼ିଣ ଗଲେ ଚତୁର୍ଥାଂଶ ତହିଁ
ଗଲେ ମାଳତୀକୁସୁମେ ଅଷ୍ଟମାଂଶ ପଦ୍ମବନେ
ଚବଶ ଗୋଟି ଭ୍ରମର ଅବଶିଷ୍ଟ ରହି
କହ ପ୍ରିୟସୁବଦନ ଭୃଙ୍ଗସଙ୍ଖ୍ୟା ତହିଁ ।
କେଉଁଠାରେ କେତେ ଗଲେ ଅନୁଭବ ହୋଇ ।

ଭ୍ରମର ସମୂହ ଏକତ୍ର ହୋଇ ଅର୍ଦ୍ଧାଂଶ ଉଡ଼ି ଗଲେ ଚତୁର୍ଥାଂଶ ମାଳତୀକୁସୁମକୁ ଗଲେ ଅଷ୍ଟମାଂଶ ପଦ୍ମଫୁଲକୁ ଗଲେ ଅବଶିଷ୍ଟ ଗୋ ୨୪ ଟି ଭ୍ରମର ଥିଲେ ସମସ୍ତ ଭ୍ରମରସଙ୍ଖ୍ୟା କେତେ । କେଉଁ ସ୍ଥାନକୁ କେତେ ଲେଖାଏଁ ଗଲେ ।

$\therefore \frac{୧}{୨} + \frac{୧}{୪} + \frac{୧}{୮} = \frac{୪+୨+୧}{୮} = \frac{୭}{୮} \therefore ୧ - \frac{୭}{୮} = \frac{୮-୭}{୮} = \frac{୧}{୮}$

∴ ? : ୧ : : ୨୪ : ଅ = $\frac{୮ \times ୨୪}{୧}$ = ୧୯୨ ଭ୍ରମର ସଂଖ୍ୟା ।

୯୬ ଯୂତିଗଲେ, ୪୮ ମାଳତୀବନେ, ୨୪ ପଦ୍ମବନେ ଗଲେ ।

ନ ୫ ସୂତ୍ର

ଅଷ୍ଟ ଯେତେ ଯାତ୍ରୀ ବୃନ୍ଦ ବଗିଚ୍ଚମଧରେ
ଯେତେକ ବୃକ୍ଷ ଅଛନ୍ତି ଏକଇ ଯାତ୍ରୀରେ
ଶାଖୁକେ ଯେତେକ ଡାଳ    ଡାଳେ ବୃକ୍ଷ ସମ ଫଳ
ଟଙ୍କାକରେ ଷୋଳଗୋଟି ଫଳ ବିକି କରେ
ଫଳ ହେଲା ଦୁଇଶହଛପନ ଟଙ୍କାରେ
କହ ପ୍ରିୟ କେତେ ବୃକ୍ଷ, ଫଳ; ସଂଖ୍ୟା ଧାରେ ।୫।

ଗୋଟିଏ ବଗିଚ୍ଚମଧରେ ଗଛ ଯେତେ ଯାତ୍ରୀ; ଯାତ୍ରକେ ଯେତେ ଗଛ; ଗଛକେ ଯେତେ ଡାଳ; ଡାଳକେ ଯେତେ ଲେଖାଏଁ ଫଳ ଥୋଳ ଅଛି ଟ ୧ ଙ୍କାକୁ ଗୋ ୧୬ ଟା ଦରରେ ସବୁସବା ଟ ୨୫୬ ଙ୍କା ବିକି କଲା; ତାହା ହେଲେ ଗଛ; ଡାଳ; ଫଳ ପ୍ରତ୍ୟେକ ସଂଖ୍ୟା କେତେ ଲେଖାଏଁ ହେବ ।

∴ ୨୫୬ × ୧୬ = ୪୦୯୬ ଫଳ ∴ ୪୦୯୬ ର ଚତୁର୍ଥ ମୂଳ ନିର୍ଣ୍ଣୟ ଫଳ ∴ $\sqrt{୪୦୯୬}$ = ୬୪ ∴ $\sqrt{୬୪}$ = ୮ ∴ ବୃକ୍ଷ ୮ ଯାତ୍ରୀ; ଯାତ୍ରୀକେ ୮ ବୃକ୍ଷ; ବୃକ୍ଷକେ ୮ ଡାଳ; ଡାଳକେ ୮ ଗୋଟି ଲେଖାଏଁ ଫଳ ହୋଇଥିଲା ।

ନ ୬ ସୂତ୍ର ।

ଚତୁର୍ଦ୍ଦଶ ଶତ ସମସ୍ତେ ନେଇ ଧନ
ଶୂଦ୍ରମାଘ ବ୍ୟବସାୟୀ କଲେ ଦୁଇଜଣ
ଯେତେ ମୂଳ ଅଠଶତ;    ଛଡାସ୍ତୁକଣ ମିଳତ
ଧନକଣେ ଛମାସରେ ଧାଁଡଶତ ପୁଣ
ଷାଠି ଟଙ୍କା ନ୍ୟୂନକର କରେଣ ଭଷଣ

କାହା ଅଂଶ କେତେ ହେବ କହ ଶୀଘ୍ରଗଣି ।

ଦୁଇଜଣ ବ୍ୟକ୍ତି ଟ ୧୫୦୦ଟଙ୍କା ମୂଳଧନ ନେଇ ମା ୪ ସ ବାଣିଜ୍ୟ କଲା ପରେ ଅନ୍ୟ ଜ ୧ ଣ ଟ ୮୦୦ ଙ୍କା ନେଇ ତାଙ୍କ ସହିତରେ ଯୋଗ ଦେଲା ଏ ଜ ୩ ଣ ଏକତ୍ରେ ମା ୬ ସ ବାଣିଜ୍ୟ କଲେ; ସର୍ବସୁଦ୍ଧା ଟ ୪୬୦ଟଙ୍କା ଲାଭ କଲେ; କାହା ଅଂଶ କେତେ ;

∴ ୧ ମ ଜ ୨ ଣ ଟ ୧୫୦୦ଟଙ୍କାରେ ମା ୧୦ ସ ବାଣିଜ୍ୟ କଲେ ∴ ୧୫୦୦ × ୧୦ = ୧୫୦୦୦ । ∴ ଅନ୍ୟ ଜଣ ଟ ୮୦୦ ରେ ମା ୬ ∴ ୮୦୦ × ୬ = ୪୮୦୦ ∴ ୧୫୦୦୦ + ୪୮୦୦ = ୧୯୮୦୦ । ∴ ୧୯୮୦୦ : ୧୫୦୦ :: ୪୬୦ : ଅ ∴ $\frac{୧୫୦୦୦ \times ୪୬୦}{୧୯୮୦୦} = \frac{୨୫ \times ୪୬୦}{୩୩} = \frac{୧୧୫୦୦}{୩୩} = ୩୪୮\frac{୧୬}{୩୩}$ ୨ୟ ଜଣର ଅନୁପାତ ୧୯୮୦୦ : ୪୮୦୦ :: ୪୬୦ : ଅ ∴ $\frac{୪୮୦୦ \times ୪୬୦}{୧୯୮୦୦} = \frac{୮ \times ୪୬୦}{୩୩} = ୧୧୧\frac{୧୭}{୩୩}$

କ ୭ ମର ।

ଉପନ୍ନବସ୍ତୁ ଯେ ବଂଶ-ବୃକ୍ଷ ପରିମାଣ;
ଛିନ୍ନ ହେଲା ବାୟୁଯୋଗେ କେତେ ହସ୍ତ ପୁଣ;
ମୂଳୁଁ ଅଠାଇଶ ଦୂରେ           ଅଗ୍ରଭାଗ ଅବନୀରେ
ଲାଗିଲା ଅଛି ସୁବୋଧ ବାଳକେ ବଦନ;
ଅଭଗ୍ନ-ଅଂଶ ତାହାର କେତେହସ୍ତ ପୁଣ;
ଭଗ୍ନ-ଅଂଶ କେତେ ହେବ କହହେ ବଦନ । ୭ ।

ହା ୪୬ ଭ ଉଚ୍ଚ, ଗୋଟିଏ ବଂଶବୃକ୍ଷ ବାୟୁଯୋଗେ ଭଗ୍ନ ହୋଇ ମୂଳରୁ ହା ୨୮ ଭ ଦୂରେ ଭଗ୍ନ ଅଂଶର ଅଗ୍ରଭାଗ ଭୂମି ସ୍ପର୍ଶ କଲା । ତାହା ହେଲେ ଅଭଗ୍ନଅଂଶ ଓ ଭଗ୍ନଅଂଶ କେତେ ?

ନିୟମ । ଭୂମିର ବର୍ଗକୁ କର୍ଣ୍ଣ ଓ କୋଟିର ଯୋଗଫଳରେ ଭାଗ କର ଲବ୍ଧ ଭାଗଫଳକୁ, କୋଟି ଓ କର୍ଣ୍ଣର ଯୋଗଫଳରେ ଯୋଗକର

ଅର୍ଦ୍ଧାଂଶ ନେଲେ ଲବ୍ଧି; ଅଥବା ସେହି ଭାଗଫଳକୁ ବୋଟ ଓ ଲବ୍ଧିର ଯୋଗଫଳରୁ ବିଯୋଗ କରି ଅର୍ଦ୍ଧାଂଶ ନେଲେ ବୋଟି ଥିବ ।

∴ ୨୮′ + ୨୬ = ୧୪ ∴ ୪୬ + ୧୪ = ୬୦ ∴ ୬୦ ÷ ୨ = ୩୦ ଷଷ୍ଠିରେଖା ଅର୍ଥାତ୍ ଭଗ୍ନଅଂଶ । ∴ ୪୬ − ୧୪ = ୩୨ ∴ ୩୨ ର ଅର୍ଦ୍ଧ ୧୬ ହାଡ଼ ଅଭଗ୍ନଅଂଶ ।

ନ ୮ ମ୍ବର ।

ଜନକର କର୍ଜ ଅଳ୍ପ ନ ଜାଣେ କୁମର,
ଟଙ୍କାରେ ସିକିଏ ସୁଧ ଚକ୍ରବୃଦ୍ଧି ଧର;
ଏକଟଙ୍କା ପ୍ରଥମରେ ଦୁଇଟଙ୍କା ଦ୍ୱିତୀୟରେ;
ତିନଟଙ୍କା ଦେଲା ଶେଷ ତୃତୀୟ ବର୍ଷର,
ସବୁଧନ ପରିଶୋଧ ହେଲା ସାଧବର;
କହ କେତେ କର୍ଜ ନେଇଥିଲା ତା ପିଅର । ୮ ।

ପିତା ୧ମ ବର୍ଷରେ କେତେ କର୍ଜ ନେଇଥିଲା ପୁତ୍ର ତାହା ଜାଣି ନାହିଁ । ଟ ୧ ଙ୍କାକୁ ବ ୧ ର୍ଷକୁ ସୁଧ ଟ ୦ । ଚାରିଅଣା ଚକ୍ରବୃଦ୍ଧି ହିସାବରେ ଏବର୍ଷ ଜନକର ଅପନ୍ନ ବର୍ଷକୁ ମୂଳ । ପୁତ୍ର; ସାଧବକୁ ୧ମ ବର୍ଷ ଟ ୧ ଙ୍କା; ୨ୟ ବର୍ଷ ଟ ୨ ଙ୍କା; ୩ୟ ବର୍ଷ ଟ ୩ ଙ୍କା ଦେଇ ପରିଶୋଧ କଲା । ପ୍ରଥମବର୍ଷ କେତେ କର୍ଜ ନେଇଥିଲା । ∴ ୩ୟ ବର୍ଷ ଟ ୩ ଙ୍କାରେ ପରିଶୋଧ ହୋଇଥିବାରୁ ୩ୟ ବର୍ଷକୁ ସୁଧ ମୂଳ ମିଶି ଟ ୩ ଙ୍କା ।

ଟ ୧ ଙ୍କାକୁ ସୁଧ ଟ ୦ । ∴ ୧ । : ୩ : : ୧ : ଅ ∴ $\frac{୩ \times ୪}{୫}$ = $\frac{୧୨}{୫}$ = ୨।୶୮ ∴ ୨।୶୮ + ୨ = ୪।୶୮ ∴ ୧। : ୪।୶୮ : : ୧ : ଅ

∴ $\frac{୪।୶୮ \times ୪}{୫}$ = ୩୳୲୲୲; ∴ ୩୳୲୲୲ + ୧ = ୪୳୲୲୲ ∴ ୧। : ୪୳୲୲୲ : : ୧ : ଅ; ∴ $\frac{୪୳୲୲୲ \times ୪}{୫}$ = ୩୳୶ ମୂଳଧନ ।

ନ ୯ ମ୍ବର।

ଝାଡ଼ ଶତହସ୍ତ ଉର୍ଦ୍ଧ୍ବେ ଦୁଇଟି ବାନର,
ତହିଁ ଦୁଇଶତହସ୍ତଦୂରେ ସରୋବର ,
ମର୍କଟେ ବୃକ୍ଷୁଁ ଓହ୍ଲାଇ          ଜଳାଶୟେ ପାଣି ଖାଇ
ଅନ୍ୟ କପି ଉର୍ଦ୍ଧ୍ବେ ଡେଇଁ ଅସେ କର୍ଣ୍ଣଧାର
ଉଭୟଙ୍କ ଗତିପଥ ଅଟେ ସମତୁଲ ,
କେତେ ହସ୍ତ ଉର୍ଦ୍ଧ୍ବେ ଡେଇଁଥିଲା କପିବର । ୧ ।

ଦୀ ୧୦୦ ହ ଉଚ୍ଚ ଗୋଟିଏ ବୃକ୍ଷ ଉପରେ ଗୋ ୨ ଟି ମାଙ୍କଡ଼ ବସିଥିଲେ ଗୋଟିଏ ମାଙ୍କଡ଼ ଗଛରୁ ତଳକୁ ଓହ୍ଲାଇ ଜଳାଶୟରେ ପାଣି ଖାଇଲା; ଅପରଟି ଉପରକୁ କେତେଦୂର ଡେଇଁ କର୍ଣ୍ଣରେଖା-ମାର୍ଗରେ ପାଣି ଖାଇଲା ଉଭୟଙ୍କ ଗତିପଥ ସମାନ ହେବେ ଅପର ବାନର କେତେହସ୍ତ ଉର୍ଦ୍ଧ୍ବକୁ ଡେଇଁଥିଲା ।

∴ ବୃକ୍ଷ ଦୀ ୧୦୦ ହ, ଜଳାଶୟ ଦୂର ଦୀ ୨୦୦ ହ ∴ ୧୦୦ + ୨୦୦ = ୩୦୦ ଦୁଇ ବାନରଙ୍କର ଗତିପଥ, ∴ ୩୦୦ + ୧୦୦ = ୪୦୦ କର୍ଣ୍ଣ ଓ କୋଟି ; ∴ ( ୭ମ ଲେଖାର ନିୟମ ଦେଖ )

∴ ଭୂଃ = ୧୦୦ ∴ ୪୦୦ + ୧୦୦ = ୫୦୦ ÷ ୨ = ୨୫୦ କର୍ଣ୍ଣ; ∴ ୪୦୦ — ୧୦୦ = ୩୦୦ ∴ ୩୦୦ ÷ ୨ = ୧୫୦ କୋଟି; ∴ ୧୫୦ — ୧୦୦ ହସ୍ତ ବୃକ୍ଷ = ୫୦ ∴ ଦୀ ୫୦ ହ ଉର୍ଦ୍ଧ୍ବକୁ ଡେଇଁଥିଲା ।

ନ ୧୦ ମ୍ବର।

ନବମାଣ ସଙ୍ଗେ ଅଛୁ ଶୁଣ ଯେ ସଦର
ନିର୍ଦ୍ଦିଷ୍ଟ ଦୀର୍ଘ ପ୍ରସ୍ଥ ତା ଯେତେ ହେବ ସ୍ଥିର
ଲମ୍ବ ଓସାର ବିଯୋଗ          କଲେ ଏକ ଷୋଡ଼ଶଭାଗ
କେତେ ଦୀର୍ଘ କେତେ ପ୍ରସ୍ଥ ଶୀଘ୍ରେ କର ସ୍ଥିର

ଘୃଣୀବଡ଼ାଳକେ ଟିଭେ କର ସ୍ୱବଗ୍ର
ଦୁଇଶ ଚଉଳଶ ଗୁଣ ଅଟଇ ଗୁଣଫଳ ।

ଜମି ଅଙ୍କ ମା ୯।୧୫୧ ଣ ପାର୍ଶ୍ୱରୁ ପ୍ରସ୍ଥକୁ ଫେଡ଼ିଲେ ୧ ରହେ ପାର୍ଶ୍ୱ କେତେ ପ୍ରସ୍ଥ କେତେ ।

ନିୟମ । ବିଯୁକ୍ତଫଳର ଅର୍ଦ୍ଧାଂଶର ଗୁଣଫଳରେ ଯୋଗ କର ଯୋଗଫଳର ବର୍ଗମୂଳ ନିଅ ଉକ୍ତ ବର୍ଗମୂଳ ସହ ବିଯୁକ୍ତ ଫଳର ଅର୍ଦ୍ଧାଂଶ ଯୋଗକଲେ ବୃହତ୍‌ରାଶି, ବିଯୋଗ କଲେ ଲଘୁରାଶି ହେବ ।

∴ ପାର୍ଶ୍ୱ—ପ୍ରସ୍ଥ = ୧ ଗୁଣଫଳ = ୯।୧୫ = ୨୪୦ ∴ ୧ ର ଅର୍ଦ୍ଧ = ½ ∴ (½)² + ୨୪୦ = ୨୪୦ ¼ ∴ √୨୪୦¼ = ୧୫½ ∴ ୧୫½ + ½ = ୧୬ ପାର୍ଶ୍ୱ ୧୫½ — ½ = ୧୫ ପ୍ରସ୍ଥ ।

ନ ୧୧ ମର ।

ଟଙ୍କଥର ପୂଜାକରେ ଅନନେ ରାଜନ
ଟଙ୍କାକରେ କଣେ ପାଞ୍ଚ ନଳିନ କୁସୁମ
ଅବ୍ୟବନେ ପୁଣି ଏକ ଦ୍ୱିତୀୟରେ ଦୁଇ ଲେଖ
କ୍ରମେ ଏକ ବଢ଼ାଇବ ଦେଖିବ ବଦନ
ଛଅଶ ଅଠଚାଳିଶମୁଦ୍ରାବ୍ୟୟ ଜାଣ
କହ ଛଳେ ପୁଷ୍ପ ବଢ଼ାଇଲା କେତେଦିନ ।

କେଉଁ ରାଜା ମହାଦେବଙ୍କୁ ୧ମ ଦିନରେ ଗୋଟିଏ ଫୁଲ ଦେଇ ତହୁଁ ଏକ ବଢ଼ାକ୍ରମେ କେତେଦିନ ଫୁଲ ଦେଇଥିଲେ । ଟ ୧ କାରୁ ପାଞ୍ଚ ଗୋ ୫ ଟି ଲେଖାଏଁ ଟ ୬୪୮ କାରେ ଫୁଲ କିଣିଥିଲେ ।

ନିୟମ । ସମୁଦାୟ ପୁଷ୍ପକୁ ୨ରେ ଗୁଣି ବର୍ଗମୂଳ ନିଅ ଏହି ବର୍ଗମୂଳକୁ ଭାଗଶେଷରୁ ବିଯୁକ୍ତ କର ସେହି ବର୍ଗମୂଳ ନିର୍ଦ୍ଦିଷ୍ଟଦିନ ସ୍ଥିର ହେବ ।

∴ ୬୪୮ × ୫ = ୩୨୪୦ ସମୁଦାୟ ପୁଷ୍ପ ∴ ୩୨୪୦ × ୨ = ୬୪୮୦ ∴ ୬୪୮୦ ବର୍ଗମୂଳ ୮୦ ଭାଗଶେଷ ୮୦ ∴ ଭାଗଶେଷ ୮୦—ବର୍ଗମୂଳ ୮୦ = ∴ ଦ ୮୦ ଦି

ନ ୧୨ ମ୍ବର ।

ତାଳେକ ସରସୀ ପାର୍ଶ୍ୱ ଅଟେ ଶତହସ୍ତ
ଅଶୀହସ୍ତ ପ୍ରସ୍ଥ ତାର ଅଛଇ ନିଶ୍ଚିତ
ତଳ କ୍ଷେତ୍ର ପାର୍ଶ୍ୱ ବିଂଶ      ପ୍ରସ୍ଥ ହସ୍ତ ଯେ ଷୋଡ଼ଶ
ଗଭୀରତା ଅଟେ ତାର ଦ୍ୱାଦଶ ହସ୍ତ
ସୁବୋଧବାଳକେ ଶୁଣ ସ୍ଥିର କର ଚିତ୍ତ
କେତେ ଘନହସ୍ତ ଜଳ ତହିଁ ହେବ ସ୍ଥିତ ।

ନିୟମ । ଉପର କ୍ଷେତ୍ରର କ୍ଷେତ୍ରଫଳ ଏବଂ ତଳକ୍ଷେତ୍ରର କ୍ଷେତ୍ର-ଫଳ ଏବଂ ଦୁଇ କ୍ଷେତ୍ରଫଳର ଗୁଣଫଳର ବର୍ଗମୂଳକୁ ଯୁକ୍ତକରି ତୃତୀୟାଂଶରେ ଗୁଣ କଲେ କ୍ଷେତ୍ରଫଳ ସ୍ଥିର ହେବ ।

∴ ୧୦୦ × ୮୦ = ୮୦୦୦ ;      ∴ ୧୬ × ୨୦ = ୩୨୦

∴ $\sqrt{୮୦୦୦ \times ୩୨୦}$ = ୧୬୦୦ ; ∴ ୮୦୦୦ + ୩୨୦ + ୧୬୦୦ = ୯୯୨୦   ∴ ୯୯୨୦ × ୧୨/୩ = ୩୯୬୮୦ ଘନଫୁଟ

ନ ୧୩ ମ୍ବର ।

ଜମ୍ବୁଦ୍ୱୀପପୁରୀରେ କେହି ମହାଜନ
ଉତାରି ବ୍ରାହ୍ମଣେ ଅଦ୍ୟେ କେତେ ଦେଲା ଦାନ
ଦ୍ୱିଗୁଣେ ବଢ଼ାଇ କରି      ତହୁଁ ପାଞ୍ଚ ତଡ଼ା ଥରୁ
କ୍ରମେ ଏହିପରି ଦେଲା ସେ ପନ୍ଦର ଦିନ
ସର୍ବସୁଦ୍ଧା ପାଞ୍ଚଶତ ପଞ୍ଚାଅଶୀ ଧନ
କହ ଶୁଦ୍ଧ ଅଦ୍ୟଦିନ କେତେ କଲା ଦାନ । ୧୩ ।

ଛ ୧ ଶ ଦାତା ମହାଦେବଙ୍କୁ ପୂଜା କରି ସେ ପ୍ରଥମ ଦିନରେ କେତେ ଟଙ୍କା ଦାନ କରିଥିଲେ ଜଣା ନାହିଁ । ତହୁଁ ୨ ଗୁଣାକ୍ରମେ ଦି ୧୫ ନରେ ଟ ୫୮୫ ଦାନ କରିଥିଲେ । ତେବେ ଅଦ୍ୟ ଦିନ କେତେ ଦାନ କରିଥିଲେ ।

ନିୟମ । ସର୍ବଧନକୁ ଶେଷ ଦି ୧୫ ନରେ ଭାଗକର । ଏହିଭାଗ-

ଫଳରୁ ଶେଷ ଦ ୧୫ ଜାରୁ ୧ ବିୟୁକ୍ତ କରି ଚୟାରେ ଗୁଣି ଗୁଣ-ଫଳର ଅର୍ଦ୍ଧାଂଶ ନେଲେ ଅଦ୍ୟ ଦାନ ଅସଇ ।

∴ ଅଦ୍ୟ ୦, ଚୟା ୫; ଶେଷ ୧୫; ସର୍ବଧନ ୫୮୫

∴ ୫୮୫ ÷ ୧୫ = ୩୯ ; ∴ ୧୫ − ୧ = ୧୪; ∴ ୧୪ × ୫ = ୭୦ ; ୭୦ ÷ ୨ = ୩୫ ; ∴ ୩୯ − ୩୫ = ୪ ଅଦ୍ୟଦାନ ।

ଲ ୧୪ ସୂତ୍ର ।

ଚଳନ୍ତି ଦାତାର ମନ ଦାନ କରିବାରେ ;
ଗୁରମାଡ଼ ସ୍ୱର୍ଣ୍ଣ ଦେଲା ପ୍ରଥମ ଦନରେ ;
ଉହୁଁ ପାଞ୍ଚ ଚୟା ଧରି ମନରେ ବିଚାରି କରି
କ୍ରମେ କେତେ ଦନ ଦାନ କଲା ଏପ୍ରକାରେ ;
ପାଞ୍ଚଶ ପଞ୍ଚାଶି ମାଡ଼ ସ୍ୱର୍ଣ୍ଣ ବିପ୍ରବରେ ;
ଦାନ କଲା କେତେ ଦନେ ବିଚାରି ସୁଧୀରେ । ୧୪ ।

ଉତ୍ତର । ଦାତା ୧ ମ ଦନରେ ମା ୪ ରୁ ସ୍ୱର୍ଣ୍ଣ ଦାନ କରି ଉହୁଁ ପାରଦନ ୫ ଚୟା ମା ୯ ଏହି କ୍ରମରେ ମା ୫୮୫ ରୁ କେତେଦନ ନରେ ଦାନ କଲେ ।

ନିୟମ । ସର୍ବଧନକୁ ଚୟାରେ ଗୁଣି ପୁଣି ୨ ରେ ଗୁଣ । ଅଦ୍ୟ ଦାନରୁ ଚୟାର ଅର୍ଦ୍ଧ ବିୟୋଗ କରି ଏହି ବିୟୁକ୍ତ ଫଳକୁ ବର୍ଗ କରି ଉପରୋକ୍ତ ଗୁଣଫଳରେ ଯୋଗକର, ଏହି ଯୋଗଫଳରୁ ଅଦ୍ୟଦାନ ବିୟୋଗ କରି ଉହିଁରେ ଚୟାର ଅର୍ଦ୍ଧ ଯୋଗକରି ତାକୁ ଚୟାରେ ହରଣ କଲେ ଫଳ ଅସିବ ।

∴ ଅଦ୍ୟଦାନ ୪; ଚୟା ୫; ଶେଷ ୦; ସର୍ବଧନ ୫୮୫

∴ ୫୮୫ × ୫ × ୨ = ୫୮୫୦; ∴ ୪ − ୫/୨ = (୮−୫)/୨ = ୩/୨; ∴ (୩/୨)² = ୯/୪ = ୨¼; ∴ ୫୮୫୦ + ୨¼ = ୫୮୫୨¼; ∴ √(୨୩୪୦୯/୪) = ୭୬½;

∴ ୭୬½ − ୪ = ୭୨½; ୭୨½ + ଚୟାର ଅର୍ଦ୍ଧ ୨½ = ୭୫; ∴ ୭୫ ÷ ୫ = ୧୫

ନ ୧୫ ପ୍ର

ଅନନ୍ତରେ ଦାନ କରେ କେହୁଁ ନୃପବର
ଅଣାଇ ପନ୍ଦର ବେଦଜ୍ଞାତା ବିପ୍ରବର
ଦେଇଣ ପ୍ରଥମ ଜଣେ     ଦେଲ ଚାରିମାଢ଼ ସ୍ୱର୍ଣ୍ଣ
ତହୁଁ ପାଞ୍ଚ ବଢ଼ା କ୍ରମେ ଦେଲେ ସର୍ବେଶ୍ୱର;
ସୁଶୀଳ–ବାଳକେ ଚିତ୍ତେ କର ସୁବିଚାର;
କହ ଦାନସ୍ୱର୍ଣ୍ଣ-ସଂଖ୍ୟା କେତେ ହେବ ସ୍ଥିର । ୧୫ ।

ଜ ୧ ଜଣେ ରଜା ଜ ୧୫ ଜଣଙ୍କ ବ୍ରାହ୍ମଣ ମଧ୍ୟରୁ ମ ୧ ଜଣକୁ ମା ୪ ଟ ଦେଇ ତହୁଁ ୫ ବଢ଼ା କ୍ରମେ ୨ୟ ଜଣକୁ ମା ୯ ଟ ଏହି କ୍ରମରେ ସମସ୍ତଙ୍କୁ ଦେଲେ ସର୍ବସୁଦ୍ଧା କେତେ ଦାନ କଲେ ;

∴ ଆଦ୍ୟ ଦାନ ୪; ବଢ଼ା ୫; ଗଚ୍ଛ ୧୫; ସର୍ବଧନ ।

ନିୟମ । ଗଚ୍ଛ ବୁଝି ଲେଖାଗୁଣ । ଏକ ଊଣା କରି ବୃଦ୍ଧିରେ ଗୁଣ ।
ମୂଳ ମାଢ଼ ଦୁଗୁଣା କରି । ଯୋଗିରେ ଗୁଣି ଦୁଇରେ ହର

∴ ( ୧୫ − ୧ ) × ୫ = ୭୦, ∴ ୭୦ + ( ୪ × ୨ ) = ୭୮

( ୭୮ × ୧୫ ) ÷ ୨ = ୫୮୫ ∴ ମା ୫୮୫ ସର୍ବଧନ ।

ନ ୧୬ ପ୍ର

ମୂଳ ପାଞ୍ଚଶତ ପଞ୍ଚାଅଶି ମାଢ଼ ସ୍ୱର୍ଣ୍ଣ,
ଅନନ୍ତମନରେ ଭୂପ ବିପ୍ରେ କଲେ ଦାନ ।
ପ୍ରଥମ ଦିନରେ ଚାରି     ମାଢ଼ ଦେଲେ ଦାନ କରି
ତହୁଁ କେତେ ବଢ଼ା କରି ଦେଲେକ ବଚନ;
କ୍ରମେ ଏ ପ୍ରକାରେ ଦେଲେ ସେ ପନ୍ଦର ଦିନ;
ବଢ଼ା ସଂଖ୍ୟା ସ୍ଥିର କର ପ୍ରିୟଶିଶୁଗଣ । ୧୬ ।

ଜଣେ ରଜା ୧ମ ଦିନ ମା ୪ ଟ ସ୍ୱର୍ଣ୍ଣ ଦେଇ ତହୁଁ କେତେ ବଢ଼ା କରି ଦି ୧୫ ଦିନରେ ମା ୫୮୫ ଟ ଦାନ କରିଥିଲେ ।

∴ ଆଦ୍ୟ ଦାନ ୪; ବଢ଼ା ୦ ; ଗଚ୍ଛ ୧୫; ସର୍ବଧନ ୫୮୫ ।

ନିୟମ । ସବୁ ଧନକୁ ଲେଖରେ ଭାଗ କରି ଅଦ୍ୟ ଦାନ ବିୟୁକ୍ତ କର ଏହି ବିୟୁକ୍ତ ଫଳକୁ ଲେଖରୁ ୧ ବିୟୁକ୍ତ କରି ତହିଁ ଅର୍ଦ୍ଧରେ ଭାଗ କଲେ ଚଢ଼ା ଆସିବ ।

∴ (୧୮୫ − ୧୫) ÷ ୪ = ୩୫; (୧୫ − ୧) ର ଅର୍ଦ୍ଧ = ୭
∴ ୩୫ ÷ ୭ = ୫ ଚଢ଼ା ଦାନ ।

ନ ୧୭ ମର

ଥିଲା ମୂଳ କହୁଡ଼ୀ କେତେକ ସାଧବର,
ଗଣ୍ଡାକେ କାହ୍ନେକ ସୁଧ ଏକାଇ ଦିନର;
ଖାତକ ନେଲାକ ଋଣ ଚକ୍ରବୃଦ୍ଧି ଧରି ପୁଣି
ସୋଳ ଦିବସରେ ସୁଧ ମୂଳ କରି ସ୍ଥିର;
ପଣେ ଅଠରଗଣ୍ଡା ଯେ ହେଲା ସାଧବର;
କହ ପ୍ରିୟେ ଝଟ୍ଟେ କେତେ ଅଟେ ମୂଳ ତାର । ୧୭ ।

ମୂଳ କହୁଡ଼ୀ କେତେକ ଗଣ୍ଡା ଚକ୍ର ବୃଦ୍ଧି ହିସାବରେ ଦି ୧ କୁ ଗଣ୍ଡାକେ କା ୧ କ୍ର ସୁଧ ସ୍ଥିର କରି କର୍ଜ ଦେଇଥିଲା ଯେ ଦି ୧୭ ନରେ ଅସଲ୍ ସୁଧ ମିଶି ପଣେ ଅଠରଗଣ୍ଡା ହେଲା ।

ନିୟମ । ସମୁଦାୟ ଦିବସରୁ ୧ ବିୟୁକ୍ତ କରି ଦିବସ ସଂଖ୍ୟାର ଅର୍ଦ୍ଧେକ ଗୁଣକରି ଦିନକର ସୁଧରେ ଗୁଣି ଉକ୍ତ ଗୁଣ ଫଳରେ ସମୁଦାୟ ଦିବସସଂଖ୍ୟା ଯୋଗକରି ସମୁଦାୟ ଅସଲ ସୁଧରୁ ବିୟୁକ୍ତ କଲେ ଫଳ ସ୍ଥିର ହେବ ।

∴ (୧୭ − ୧) × ୬ = ୧୬୦; ∴ ୧୬୦ × ସୁଧ କା ୧ କ୍ର = ୧୬୦ କାହ୍ନ = ୪୦ କଡ଼ା = ଗ ୧୦ ଣ୍ଡା ∴ ୮ / ୧୮ ଗଣ୍ଡା = ୩୮ ଗଣ୍ଡା ∴ ୩୮ − (୧୦ + ୧୭ ଦିବସ) = ୧୬ ଗଣ୍ଡା ମୂଳ କହୁଡ଼ି ।

ନ ୧୮ ମର ।

ଦ୍ୱାଦଶ-ଗଣ୍ଡା ଯେ ମୂଳ ଦେଇଥିଲା ଧାର
ଦିନକୁ ଗଣ୍ଡାଏ କାଳେ ସୁଧ ସାଧିବାର
ଚକ୍ରବୃଦ୍ଧି ଧର ମନେ ଏପ୍ରକାରେ ଷୋଳଦିନେ
ସୁଧ ମୂଳ ମିଶି ଦୁହେଁ କେତେ ହେବ ସ୍ଥିର
ସୁଶୀଳବାଳକେ ମନେ କର ସୁବିଚାର
ଯାକ ମୂଳ ହେବ ଗଡ଼-ହାଲା କଳନ୍ତର ।

ଗ ୧୨ ଶ୍ରୀ କଉଡ଼ି ଦ ୧ ରୁ ଗ ୧ ଶ୍ରୀ କେ କାଳେ ସୁଧ ଧରି ଚକ୍ରବୃଦ୍ଧି ହିସାବରେ କର୍ଜ ଦେଇଥିଲା ଦ ୧୬ ନରେ କେତେ ହେବ ।

ନିୟମ । ଦିବସ ସଂଖ୍ୟାରୁ ୧ ବିଯୁକ୍ତ କର ଦିବସ ସଂଖ୍ୟାର ଅର୍ଦ୍ଧିକରେ ଗୁଣକର ଦ ୧ ନର ସୁଧରେ ଗୁଣକର । ଏହି ଗୁଣ-ଫଳରେ ସମୁଦାୟ ଦିବସ ସଂଖ୍ୟା ଯୋଗକଲେ ସୁଧ ଆସିବ ।

∴ (୧୬—୧) × ୮ = ୧୨୦; ∴ ୧୨୦ × ଦ ୧ ନର ସୁଧ କା ୧ = ୧୨୦ ଟାଙ୍କ = ୪୦ କଉଡ଼ା = ଗ ୧୦ ∴ ସମୁଦାୟ ଦିବସ ୧୬ + ୧୦ = ୨୬ ଗ ୨୬ ଶ୍ରୀ = ୨୬ ଥିଲା ।

ନ ୧୯ ମର ।

ଧନ ଥିଲା ଛଅଶ ତଙ୍କାର ଏକଶତ
ଧନପୁତ୍ର ଚାରିକନ୍ୟା ତାହାର ବିଦିତ
ଧନକନ୍ୟା ସମଅଂଶ ଜ୍ୟେଷ୍ଠ ଅଧିକ ଧନଶ
କନ୍ୟାଠାରୁ ତୃତୀୟାଂଶ ବେଶି ନେବେ ପୁତ୍ର
ପୁତ୍ରମାନେ ସମାନାଂଶ ହୋଇବେ ପ୍ରାପତ
କିଏ କେତେ ନେଲା ହୋଇ ତୁଷ୍ଟଚିତ୍ତ । ୧୯

କା ୧ ଣେ ମହାଜନର ଟ ୬୩୧୦୦ ଙ୍କା ଥିଲା ତାହାର ପୁତ୍ର କନ୍ୟା ୪ ଥିଲେ ସେ ଏହି ପ୍ରକାରେ ଭାଗ କରିଦେଲା । ଜ୍ୟେଷ୍ଠ

କ ୩ କନ୍ୟା ପ୍ରତ୍ୟେକେ ଯେତେଟଙ୍କା ପାଇବେ ; ଜ୍ୟେଷ୍ଠକନ୍ୟା ତାହାଠାରୁ ଟ ୩୦୦ ଙ୍କା ଅଧିକ ପାଇବ । ଜ୍ୟେଷ୍ଠକନ୍ୟା ଯେତେ ପାଇବ ପ୍ରତ୍ୟେକ ପୁତ୍ର ତେତେ ଓ ତହିଁରୁ ଭା ୩ ଗ ଏକଭାଗ ଅଧିକ ପାଇବେ ।

∴ କନିଷ୍ଠ କ ୩ ଜଣ = ଭା ୩ ଗ; ∴ ଜ୍ୟେଷ୍ଠ କନ୍ୟା = ଭା ୧ ଗ + ଟ ୩୦୦ ଙ୍କା ∴ ପ୍ରତ୍ୟେକ ପୁତ୍ର = ଭା ୧ + ୩୦୦ + ଭା $\frac{୧+୩୦୦}{୩}$; ∴ ପୁ ୩ ଜ = ଭା ୩ + ୯୦୦ + ଭା $\frac{୩+୯୦୦}{୩}$ = ଭା ୩ + ୯୦୦ + ଭା ୧ + ୩୦୦ = ୪ + ୧୨୦୦; ∴ ୪ କନ୍ୟା = ଭା ୪ ଗ + ୩୦୦ ∴ ଭା ୪ ଗ + ୧୨୦୦ ଭା ୪ + ୩୦୦ = ଭା ୮ + ୧୫୦୦ = ୨୩୧୦୦ ସମ୍ପତ୍ତି ଟଙ୍କା ∴ ଭା ୮ ଗ = ୨୩୧୦୦ − ୧୫୦୦ = ୨୧୬୦୦ ∴ ଭା ୧ = ୨୭୦୦ ଟଙ୍କା ∴ କନିଷ୍ଠ ପ୍ରତ୍ୟେକ କନ୍ୟା = ୨୭୦୦ ∴ ଜ୍ୟେଷ୍ଠକନ୍ୟା = ୨୭୦୦ + ୩୦୦ = ୩୦୦୦ ∴ ପ୍ରତ୍ୟେକ ପୁତ୍ର = ୩୦୦୦ + ୧୦୦୦ = ୪୦୦୦ ।

ନଂ ୨୦ ପଦ୍ୟ ।

ନିଜ ସମ୍ପତ୍ତିରୁ ତ୍ରୟୋଦଶାଂଶ ମନ୍ଦିରର
ଚତୁର୍ଥାଂଶ ପତ୍ନୀକି ଯେ ଦେଲା ମାଧବର
ତନୟଙ୍କୁ ଡାକାଇ ଅବଶିଷ୍ଟ ଟଙ୍କା ଦେଲ
ଜ୍ୟେଷ୍ଠ ପଞ୍ଚମାଂଶ ଚତୁର୍ଥାଂଶ ମଧ୍ୟମର
କନିଷ୍ଠର ତ୍ରୟୋଦଶାଂଶ ସମଛନ୍ଦକର
ସାତଶ ପଞ୍ଚାଶ ଟଙ୍କା କହବେ ସୁଧୀର । ୨୦ ।

ଜଣେ ମାଧବ ସମସ୍ତ ସମ୍ପତ୍ତିରୁ ଅପଣା ନିମନ୍ତେ ତ୍ରୟୋଦଶାଂଶ ରଖି ପତ୍ନୀକୁ ଚତୁର୍ଥାଂଶ ଦେଲା । ଅବଶିଷ୍ଟ ଟଙ୍କା ତନୟଙ୍କୁ ଡାକି ଭାଗକରି ଦେଲା ଯେ ଜ୍ୟେଷ୍ଠପୁତ୍ର ଯେତେ ପାଇଥିଲା ତହିଁରୁ $\frac{1}{5}$ ଅଂଶ ମଧ୍ୟମ ପୁତ୍ରର $\frac{1}{4}$ ଅଂଶ ଏବଂ କନିଷ୍ଠର $\frac{1}{3}$ ଅଂଶ ସମାନ ଭାଗରେ ମିଶି ଟ ୭୫୦ ଙ୍କା ହେବ ତାହା ଅଂଶ କେତେ ।

∴ ୭୫୦ ÷ ୩ = ୨୫୦ ∴ କନିଷ୍ଠ ପୁତ୍ର = ୨୫୦ × ୩ = ୭୫୦ ∴ ମଧ୍ୟମ ପୁତ୍ର = ୨୫୦ × ୪ = ୧୦୦୦ ∴ ଜ୍ୟେଷ୍ଠ ପୁତ୍ର = ୨୫୦ × ୫ = ୧୨୫୦ ∴ ୭୫୦ + ୧୦୦୦ + ୧୨୫୦ = ୩୦୦୦ ; ପୁତ୍ରମାନଙ୍କ ଅଂଶ ∴ ୧ − ( ୧/୩ + ୧/୪ ) = (୧୨ − (୪ + ୩))/୧୨ = ୫/୧୨

∴ ୫/୧୨ : ୧ :: ୩୦୦୦ : ଅ ; ∴ ୧୨/୫ × ୩୦୦୦ = ୭୨୦୦

| | | | |
|---|---|---|---|
| ∴ ସମୁଦାୟ | ୭୨୦୦ | ଜ୍ୟେଷ୍ଠପୁତ୍ର | ୧୨୫୦ |
| ∴ ଜଗନ୍ନାଥଙ୍କୁ | ୨୪୦୦ | ମଧ୍ୟମ ପୁତ୍ର | ୧୦୦୦ |
| ∴ ପତ୍ନୀକୁ | ୧୮୦୦ | କନିଷ୍ଠ ପୁତ୍ର | ୭୫୦ |

ନ ୨୧ ମନ୍ତ୍ର ।

ପ୍ରଭାତରେ ଭୃଙ୍ଗମାନେ ଧାଇବାକୁ ହୋଇ
ପ୍ରଫୁଟିତ ଦେଖି କଞ୍ଜ ଏକେ ଏକେ ଯାଇ
ପଦ୍ମୟାରେ ବସିଲେ ଅଂଶ ଭ୍ରମର ବଳଲେ
ପୁଣ ପୁଷ୍ପରେ ଯୋଡ଼ିଏ ପଙ୍କଜ ବାକଇ
କହ ପ୍ରିୟ ଶିଷ୍ୟ ଭୃଙ୍ଗ ଭୃଙ୍ଗ ସଂଖ୍ୟା କହି
ଭ୍ରମରଙ୍କ ସଂଖ୍ୟା କେତେ ବୁଝି ମନ ଦେଇ । ୨୧

ଗୋଟିଏ ପୋଖରୀରେ କେତେକ ପଦ୍ମଫୁଲ ଫୁଟିଥିଲା ଫୁଲ ଗୋଟିକେ ଗୋଟିଏ ଲେଖାଏଁ ଭ୍ରମର ବସିବାରୁ ଗୋ ୨୦ ଟି ଭ୍ରମର ବଳଲେ ଗୋ ୨ ଟି ଲେଖାଏଁ ବସିଲେ ଗୋ ୨୦ ଟି ଫୁଲ ବଳଲା । ଭ୍ରମର ଓ ଫୁଲ ସଂଖ୍ୟା କେତେ ଲେଖାଏଁ ।

∴ ଭ୍ରମର = ପଦ୍ମଫୁଲ + ୨୦ ∴ ଫୁଲ ଗୋଟିକେ ଗୋ ୨ ଟି ଲେଖାଏଁ ଭ୍ରମର ବସିବାରୁ ଗୋ ୨୦ ଟି ଫୁଲ ବେଶି ହେବାରୁ ଗୋ ୪୦ ଟି ଭ୍ରମର କମ ହେଲେ । ∴ ୨ଗୁଣ ଫୁଲ = ସମସ୍ତ ଭ୍ରମର + ୪୦ = ସମସ୍ତ ଫୁଲ + ୨୦ + ୪୦ ∴ ପଦ୍ମଫୁଲ = ୬୦ ∴ ଭ୍ରମର = ୬୦ + ୨୦ = ୮୦ ।

ନ ୨୨ ମତ

ଫଳନ୍ତି ଆମ୍ବ ପନସ ଗୁଆ ଯେ ଜମ୍ବିର
ନାରିକେଳ ଆଦି ଫଳ ବଗିଚା ମଧ୍ୟର
ଟଙ୍କା କରେ ଆମ୍ବ, ଶହେ        ପନସ ଷୋଳଟି ଦଏ
ଗୁଆ ଜମ୍ବିର ଦୁଇଶ ଅଶି ନାରିକେଳ
ସମଭାଗେ ତୋଳିଅଛି ସବୁଜାତି ଫଳ
ସାତଶ ଷାଠିଏ ଟଙ୍କା ସମସ୍ତର ମୂଲ୍ୟ । ୨୨ ।

ଯେ ୧ ଜଣେ ବଗିଚା ମଧ୍ୟରୁ ଆମ୍ବ, ପଣସ, ନଡ଼ିଆ, ଜମ୍ବିର; ସବୁ ଫଳ ସମାନ ଭାଗରେ ତୋଳି ଜମା କଲା । ଟଙ୍କାକରେ ଆମ୍ବ ୧୦୦ ପଣସ ୧୬, ନଡ଼ିଆ ୮୦, ଗୁଆ ୨୦୦, ଜମ୍ବିର ୨୦୦ ଦରରେ ବିକି କରି ଟ ୭୬୦ ଙ୍କା ପାଇଲା । ତେବେ ସମସ୍ତ ଫଳର ସଂଖ୍ୟା କେତେ ଲେଖାଏଁ ।

∴ ୧୦୦, ୧୬, ୮୦, ୨୦୦, ୨୦୦; ଏ ସମସ୍ତର ଲ: ସା: ଗୁ: ୧୬୦୦ ∴ ପ୍ରତ୍ୟେକ ଫଳରୁ ୧୬୦୦ ଲେଖାଏଁ ଆଣି ବିକି କଲେ ଆମ୍ବ ଟ ୧୬ ଙ୍କା, ପଣସ ଟ ୧୦୦ ଙ୍କା, ନଡ଼ିଆ ଟ ୨୦ ଙ୍କା, ଗୁଆ ଟ ୮ ଙ୍କା, ଜମ୍ବିର ଟ ୮ ଙ୍କା ସମସ୍ତ ଏକତ୍ରେ ଟ ୧୫୨; ∴ ୭୬୦ ÷ ୧୫୨ = ୫ ∴ ୧୬୦୦ × ୫ = ୮୦୦୦ ପ୍ରତ୍ୟେକ ଫଳ ।

ନ ୨୩ ମତ ।

ବନପଥଠାରୁ ମୃଗ ଅଶିଗଜ ଦୂରେ;
ବହେଳକ ପଳାଏ ଦଶକୋଶ ପାଞ୍ଚକରେ;
ମୃଗ ପଳାଇବା ଜାଣି        ସିଂହ ଗୋଡ଼ାଇଲା ପୁଣି
ଥଇଲା ତାହାକୁ ଶୂନପଖା ମମପୁରେ;
କେତେ ଘଡ଼ି ଗଲା ସିଂହ ପାଧାକ ମଧ୍ୟରେ;
କହ ଦେଖି ସୁବୋଧ ଶିଶୁ ଅନନ୍ୟମନରେ । ୨୩ ।

∴ ମୃଗ ଆଗେ ଗ ୧ - ୪ = ? ∴ ୫ × ୧୦ = ୫୦ ଘଡ଼ି ।

ସମ ଗତ ; ୫୦ କୋଶ +୮୦ ଗଜ ... = ୧୨ କୋଶ ୨୨୨୦ ଗଜ ; ଯିବାର ସମ୍ଭାବେ ଗତ ।

ନ ୨୪ ସୂତ୍ର ।

ଭୀମାବ୍ରାହ୍ମଣସମସ୍ତେ କେତେ ବିପ୍ରବର
ଭୂପତିଙ୍କ ସମୀପରୁ ଗଲେକ ସତ୍ୱର
ଜଣଙ୍କୁ ଅଣାଇ ଥିଲା ତିନ ତିନ ଟଙ୍କା ଦାନ
ଦେଲେ ବିଂଶ ଟଙ୍କା ବେଶି ହେଲା ନୃପଙ୍କର
ଚାରି ଦେଲେ ବିଂଶ ଟଙ୍କା ନ ଅଣ୍ଟେ ସୁଧୀର
ଟଙ୍କା ସଂଖ୍ୟା ବିପ୍ର ସଂଖ୍ୟା କେତେ କର ସ୍ଥିର ।୨୪।

ଜ ୧ ଜଣେ ରାଜା କେତେଜଣ ବ୍ରାହ୍ମଣଙ୍କୁ ଦେଖି ଜ ୧ ଜଣଙ୍କୁ ଟ ୩ ଙ୍କା ଲେଖାଏଁ ଦେବାରେ ତାହାଙ୍କ ଦତ୍ତ ଟଙ୍କାରୁ ଟ ୨୦ ଙ୍କା ବେଶି ହେଲା । ଜ ୧ ଙ୍କୁ ଟ ୪ ଙ୍କା ଲେଖାଏଁ ଦେଲେ ଟ ୨୦ ଙ୍କା କମ ହେଲା । ଟଙ୍କା ଓ ବିପ୍ର ସଂଖ୍ୟା କେତେ ?

∴ ୩ × ବ୍ରାହ୍ମଣ = ସମ୍ପ୍ରଦାୟ ଟଙ୍କା − ୨୦ ∴ ସମ୍ପ୍ରଦାୟ ଟଙ୍କା = ୩ × ବ୍ରାହ୍ମଣ + ୨୦ ∴ ୪ × ବ୍ରାହ୍ମଣ = ସମ୍ପ୍ରଦାୟ ଟଙ୍କା + ୨୦ ∴ ୪ × ବ୍ରାହ୍ମଣ = ୩ × ବ୍ରାହ୍ମଣ + ୨୦ + ୨୦ ∴ ବ୍ରାହ୍ମଣ = ୪୦, ∴ ଟଙ୍କା = ( ୪୦ × ୩ ) + ୨୦ = ୧୪୦

ନ ୨୫ ସୂତ୍ର ।

ମନ୍ଦିରନନ୍ଦନ ଏକ ପଦ୍ମ ଭାଙ୍ଗିଲା
ଜଳକ୍ରୋଧେ ଅର୍ଦ୍ଧାଂଶ ଉର୍ଦ୍ଧ୍ୱେ ଯୋଗାଇଲା
ଚତୁର୍ଥାଂଶ ସଲିଳରେ ଅଷ୍ଟମାଂଶ ସେ ପଙ୍କରେ
ହୋଇଲା ଜାଣ ପାଞ୍ଚିଲୁ ସେ ନୃପଙ୍କ
ଜଳର ମୂଳ ପର୍ଯ୍ୟନ୍ତ କେତେ ଦୀର୍ଘ ଅଟଇ
କେତେକ ହସ୍ତ କହିବୁ ନଳ୍ପ ହୋଇଗଲା ।୨୫।

+ ୩ଗୁଣ ୨ୟ = ୧୨୦ ∴ ୨ଗୁଣ ୧ମ ଭାଗ = ୩୦; ∴ ୧ମଭାଗ = ୧୫ ଭରଣ । ପୁଣି ଗୁ ୪ ଣ ୧ମ ଭାଗ + ଗୁ ୩ ଣ ୨ୟ ଭାଗ = ୧୮୦ ∴ ୪ଗୁଣ ୧ମ ଭାଗ + ୫ଗୁଣ ୨ୟ ଭାଗ = ୨୦୦ ∴ ୨ଗୁଣ ୨ୟ ଭାଗ = ୫୦ ∴ ୨ୟ ଭାଗ = ୨୫ ଭରଣ ।

ନ ୨୯ ମ୍ବର ।

ବରିଷ୍ଟ, ଆମ୍ବ, ପଣସ ଗୁଆ ନାରିକେଳ;
ଲଗାଏ ବାଂଶ ବସ୍ତିରେ ଭୂମି କରି ସ୍ଥିର,
ବୃକ୍ଷ କ୍ରମେ ଦଶ ଆଠ ଛଅ ଚାରି ପାର୍ଶ୍ୱ ପ୍ରସ୍ଥ
ଏବେ ବସ୍ତୁ ବୃତ୍ତରେ ବୃକ୍ଷ ରୋପଣ ସମ୍ଭାର
ଦ୍ୱିମାଣ ଚାରିଗୁଣ୍ଠ ଜମିର ମଧ୍ୟର
କେତେକ ଗଛ ଲାଗିବ କହିବେ ସୁଧୀର । ୨୯ ।

| | | | | | | | |
|---|---|---|---|---|---|---|---|
| ଆମ୍ବ ଗଛ | ଗୋ ୧ ଟିକୁ | ଦୈର୍ଘ୍ୟ | ହା | ୧୦ | ପ୍ରସ୍ଥ | ହା | ୧୦ |
| ପଣସଗଛ | ଗୋ ୧ | ,, | ହା | ୮ | ,, | ହା | ୮ |
| ନାରିଅଗଛ | ଗୋ ୧ | ,, | ହା | ୬ | ,, | ହା | ୬ |
| ଗୁଆଗଛ | ଗୋ ୧ | ,, | ହା | ୪ | ,, | ହା | ୪ |

ଛତ୍ରାରେ ଲଗାଇଲେ ଦ ୨୦ ଗୁ ପରିମାଣରେ ମା ୨।୮ ବା ଜମିରେ କେତେ ଲେଖାଏଁ ଗଛ ଲାଗିବ ।

| | | | | | | | |
|---|---|---|---|---|---|---|---|
| ∴ ଆମ୍ବଗଛ | ଗୋ ୧ ଟିକୁ | ଦୈର୍ଘ୍ୟ ହା | ୧୦ × | ପ୍ରସ୍ଥ ହା | ୧୦ | = ୧୦୦ | ବର୍ଗହସ୍ତ |
| ପଣସଗଛ | ,, | ,, ହା | ୮ × | ,, | ୮ | = ୬୪ | ,, |
| ନାରିଅଗଛ | ,, | ,, ହା | ୬ × | ,, | ୬ | = ୩୬ | ,, |
| ଗୁଆଗଛ | ,, | ,, ହା | ୪ × | ,, | ୪ | = ୧୬ | ,, |

∴ ୧୦୦ + ୬୪ + ୩୬ + ୧୬ = ୨୧୬ ∴ ମା ୨।୮ = ଗୁ ୫୪

∴ ୫୪ × ୪୦୦ = ୨୧୬୦୦ ବର୍ଗହସ୍ତ ∴ ୨୧୬୦୦ ÷ ୨୧୬ = ୧୦୦

∴ ପ୍ରତ୍ୟେକଗଛରୁ ୧୦୦ ଲେଖାଏଁ ଲାଗିବ ।

ନଂ ୩୦ ସୂତ୍ର ।

ଶିବ ଦରଶନ କରୁଥିଲେ କେ ସୁଜନ;
ସେବକେ ନିକଟେ ଛନ୍ତି ତଙ୍କା ଅଂଶ ଧନ;
ସମସ୍ତଙ୍କୁ ଦେଲେ ଦାନ        କ୍ରମରେ ତଙ୍କା ଧରଣ
ପ୍ରଥମ ଜଣ ପାଇଲା ଗ୍ରହମାତ୍ର ସ୍ଥିତି;
ଶୃଙ୍ଗଦ୍ୱିକାର ଷାଠିଏ ମାତ୍ର ଦେଲେ ଦାନ;
କେତେ ତଙ୍କାକ୍ରମେ ନେଲେ ସେ ସେବକ ଜନ ।୩୦।

∴ ଅଦ୍ୟ ଦାନ ୪; ତଙ୍କା ୦; ଶେଷ ଜ ୪୦ ଣ, ସର୍ବାଧନ ୪୦୬୦
ନଂ ୧୬ ସୂତ୍ର ଅଙ୍କର ନିୟମ ଦେଖ ∴ (୪୦୬୦ ÷ ୪୦)
— ଅଦ୍ୟଦାନ ୪ = ୯୭½ ∴ (ଶେଷ ୪୦ — ୧) / ୨ = ୧୯½ ∴ ୯୭½
÷ ୧୯½ = ୫ ∴ ୫ ତଙ୍କାକ୍ରମେ ଦାନ କରିଥିଲେ ।

ନଂ ୩୧ ସୂତ୍ର ।

ସତ୍ରାମେ ବିପ୍ରମାନଙ୍କୁ ଡାକି ନୃପବର;
ଶୃଙ୍ଗଦ୍ୱିକାର ଷାଠିଏ ମାତ୍ର ସଂଖ୍ୟା ସ୍ଥିର;
ଅଦ୍ୟେ ଗ୍ରହମାତ୍ର ଦାନ        ଛନ୍ତି ପାଞ୍ଚ ତଙ୍କା ପୁଣ
ଏହିରୂପେ ଧନ ନେଲେ ସର୍ବ ଦ୍ୱିଜବର;
ସ୍ଥାନାନ୍ତରେ ଗଲେ ସବୁ ସେ ଯାଦା ମନ୍ଦର;
ବିପ୍ର ସଂଖ୍ୟା କେତେ ହେବ ଶୀଘ୍ର କର ସ୍ଥିର ।୩୧।

∴ ଆଦ୍ୟଦାନ ୪; ତଙ୍କା ୫; ଶେଷ ୦; ସର୍ବଧନ ୪୦୬୦
ନଂ ୧୮ ସୂତ୍ର ଅଙ୍କର ନିୟମ ଦେଖ ∴ ୪୦୬୦ × ୫ × ୨ = ୪୦୬୦୦
∴ ଆଦ୍ୟଦାନ ୪ — ତଙ୍କାର ଅର୍ଦ୍ଧ ୫/୨ = ୩/୨; ∴ (୩/୨)² = ୯/୪ = ୨¼;
∴ ୪୦୬୦୦ + ୨¼ = ୪୦୬୦୨¼; ∴ √୪୦୬୦୨¼ = ୨୦୧½
∴ ୨୦୧½ — ଆଦ୍ୟଦାନ ୪ = ୧୯୭½, ∴ ୧୯୭½ + ତଙ୍କାର ଅର୍ଦ୍ଧ
= ୨୦୦; ∴ ୨୦୦ ÷ ତଙ୍କା ୫ = ୪୦ ଜଣ ।

ପ୍ରଥମ ପଦରୁ ଫଳେ                    ଦ୍ୱିତୀୟ ଦ୍ୱିଗୁଣ ଧରେ

ତୃତୀୟ ପଦ ତ୍ରିଗୁଣ ଚଢ଼ା ଏକମର

ବେଦେଇକ ଦ୍ୱିଳ ହୋଇବେ ସମସ୍ତ ଯୁଗଳ

ବର୍ଷକୁ ବେଢନ ହେବେ ହୋଇବ ଭାଦ୍ୱାର ।୩୪।

ନ ୧୫ ମର ଅଙ୍କର ନିୟମ ଦେଖ । ∴ ଆଦ୍ୟ ୧; ଚଢ଼ା ୧; ଶେଷ ୧୦୦; ସର୍ବଧନ କେତେ ∴ ( ୧୦୦ − ୧ ) × ଚଢ଼ା ୧ + ( ମୂଳ ମାତ୍ର ୧ × ୨ ) = ୧୦୧ ∴ ( ୧୦୧ × ୧୦୦ ) ÷ ୨ = ୫୦୫୦ ଦ୍ୱିଳ ହେଲା ସର୍ବ ଧନ ∴ ଦ୍ୱି ୧ ଲକ୍ଷ ଗ ୧୮ ଶ୍ରୀ; ∴ ୫୦୫୦ × ୧୮ = ୯୦୯୦୦ ଗଣ୍ଡା = ୪୫୪୫ ପଣ = କା ୨୮୪/ ବର୍ତ୍ତନ ।

ସମାପ୍ତ ।



